# ଆମ ପିଲାଙ୍କ

# ଲୋକଗୀତ



ଖୁସିରେ ପଢ଼ିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

# ଆମ ପିଲାଙ୍କ ଲୋକ ଗୀତ

ସଙ୍କଳନ : ଶ୍ରୀ ଭାଗୀରଥି ନେପାକ
ଅଙ୍କନ : ଗୌରୀ ଶଙ୍କର ବେହେରା
ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୨, ହାଉସିଂ ବୋର୍ଡ୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୪୭୦୮୯୧

ଅଙ୍ଗସଜ୍ଜା : ଓରିଜନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।
ମୁଦ୍ରଣ :
ସହଯୋଗ ରାଶି : ତିନି ଟଙ୍କା ମାତ୍ର
ପ୍ରକାଶ କାଳ : ଜାନୁଆରୀ ପହିଲା, ୧୯୯୭

ଏହି ପୁସ୍ତିକାଟି ' **ଖୁସିରେ ପଢିବା ଅଭିଯାନ** ' (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରଚିକୁ ଦେଖିବା ସାଙ୍ଗକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।

● **Children's Folk Songs** ● Compiler - Bhagirathi Nepak ● Illustration - Gouri Shankar Behera ● Published by B.G.V.S., Orissa for Jan Vachan Andolan ● Price - Rs. 3.00 ● Publication Period - 1st January 1997.

# ସୂଚୀପତ୍ର



## ପିଲାଙ୍କ ଲୋକ ଗୀତ, ମାଆ ଗାଉଥିବା ଗୀତ

## ମୁଖଶାଳା

ପୃଥିବୀରେ ଅନେକ ଦେଶ, ଅନେକ ଲୋକ, ଅନେକ ଜାତି, ଅନେକ ଭାଷା । ପୃଥିବୀର ସବୁ ମଣିଷ ସବୁଠି ସମାନ । ଯିଏ ଯେଉଁଠି ରହୁନା କାହିଁକି, ସେମାନଙ୍କର ମନ ସମାନ । ସଭିଏ ଭଲରେ ରହିବାକୁ ଚାହାନ୍ତି । ସଭିଏ ଖୁସିରେ ରହିବାକୁ ଚାହାନ୍ତି । ଏହି ଭଲରେ ରହିବାକୁ, ଖୁସିରେ ରହିବାକୁ ସେମାନେ ଯାହା ଯାହା କରନ୍ତି, ତାକୁ ସଂସ୍କୃତି କୁହାଯାଏ ।

ଲୋକ-ଗୀତ, ଲୋକ-ନାଚ, ଲୋକ-କଳା ଆଦି ଲୋକ-ସଂସ୍କୃତିର ଅଂଶ । ଜନ-ଜୀବନ ସହିତ ଲୋକ-ଗୀତ, ଲୋକ-ନାଚର ଗଭୀର ସଂପର୍କ । ମଣିଷ ଜୀବନର ପିଲାବେଳୁ ଏ ସଂପର୍କ ଗଢ଼ି ଉଠିଥାଏ ।

ସରଳ ଶିଶୁମାନଙ୍କୁ ଖେଳାଇବା, ଶୁଆଇବା, ଅଝଟବେଳେ ବୁଝାଇ ଶୁଝାଇ ଗୀତ ଗାଇ, କଥା କହି ସେମାନଙ୍କୁ ତୁନି କରିବା ପାଇଁ ଶିଶୁର ମାଆ ଓ ଅନ୍ୟମାନେ ଅନେକ ପ୍ରକାର ଗୀତ ଗାଇଥାନ୍ତି । ଏ ଗୀତ ଅନେକ କାଳରୁ ଲୋକଙ୍କ ମୁଖରେ ଶୁଣା ଯାଇଥାଏ । ମାଆ ଓ ଅନ୍ୟମାନେ ଲୋକଙ୍କ ମୁହଁରୁ ଏ ଗୀତମାନ ଶୁଣି ଶୁଣି ମନେ ରଖି ଗାଇଥାନ୍ତି ।

ଏ ଗୀତ କେବେ କାହା ମୁହଁରୁ ବାହାରି ଥିଲା, ତାର ଠିକ୍ ଠିକଣା ନ ଥାଏ । ଏ ଗୀତ ଶୁଣି ଭଲ ଲାଗିଥିଲା ବୋଲି ଲୋକ ମନେରଖି ଗାଇଥାନ୍ତି । ପୁରୁଷ ପୁରୁଷ ଧରି, ଏହିପରି ଭାବରେ ଏ ଗୀତ ଜିଇଁ ରହେ ।

ଛୋଟ ପିଲା ମାଆ ଓ ଅନ୍ୟମାନଙ୍କ ମୁହଁରୁ ଏ ଗୀତ ଶୁଣି ମନେରଖି ଗାଏ । ବଡ଼ ହୋଇ ତାର ପୁଅ ଝିଅଙ୍କୁ ଏ ଗୀତମାନ ଶୁଣାଏ । ଏହି ପରି ଭାବରେ ଶିଶୁ ଲୋକ ଗୀତମାନ ବଂଚି ରହେ ।

ଛୋଟ ଛୋଟ ଶିଶୁମାନେ ଏ ଗୀତ ଶୁଣିବାକୁ ଖୁବ ଭଲ ପାଆନ୍ତି । କାନ୍ଦୁଥିବା ଶିଶୁ ଗୀତ ଶୁଣି ତୁନି ହୋଇଯାଏ । ଏ ଗୀତରୁ ନିର୍ଦ୍ଦିଷ୍ଟ ଅର୍ଥ ନ ବାହାରିଲେ ବି ଏହାର ସଂଗୀତ-ଲହର ଶୁଣି ଶିଶୁ ଖୁସି ହୁଏ । ଏହା ବାରମ୍ବାର ଶୁଣିବା ପରେ ତାର ମନେ ରହିଯାଏ । କଥା କହି ଶିଖିବା ପରେ ସେ ନିଜେ ଏ ସବୁ ଗୁଣୁ ଗୁଣୁ ହୋଇ ଗାଏ ।

ଓଡିଶାରେ ଗାଁ ଗହଳରେ ଶିଶୁ ଲୋକଗୀତମାନ ବହୁତ ଭାବରେ ଶୁଣାଯାଏ । କିନ୍ତୁ ସହରୀ ମାଆମାନେ ଏବେ ଏ ଗୀତମାନ ଆଉ ଗାଉ ନାହାନ୍ତି । ଆଧୁନିକ ସଭ୍ୟତା ଅତୀତର ପରଂପରାକୁ ଭୁଲି ଯାଉଛି । ଶିଶୁମାନେ ଖେଳିଲା ବେଳେ ବା ଶିଶୁମାନଙ୍କୁ ଖେଳାଇଲା ବେଳେ ଯେଉଁ ଗୀତ ବୋଲନ୍ତି ବା ବୋଲାଯାଏ, ସେ ସବୁ ଏ ବହିରେ ଏକାଠି କରା ଯାଇଛି । ଏହି ଗୀତମାନଙ୍କୁ ଦୁଇ ଭାଗରେ ଭାଗ କରାଯାଇ ପାରେ । ତାହା ହେଲା— ଶିଶୁମାନେ ଗାଉଥିବା ଗୀତ ଓ ଶିଶୁମାନଙ୍କୁ ମା ଓ ଅନ୍ୟମାନେ ଗାଇ ଶୁଣାଉଥିବା ଗୀତ ।

ଶିଶୁମାନେ ଆସ୍ତେ ଆସ୍ତେ ବଢିବାକୁ ଲାଗନ୍ତି । ସେମାନେ ଦାଣ୍ଡକୁ ଖେଳିବାକୁ ଯାଆନ୍ତି । ସେଠାରେ ବଡ଼ମାନଙ୍କ ମୁହଁରୁ ଗୀତ ଶୁଣିବାକୁ ଅପେକ୍ଷା ନ କରି, ନିଜେ ନିଜେ ଶୁଣି ମନେ ରଖିଥିବା ଗୀତ ସବୁ ଗାଆନ୍ତି ।

ଏହିପରି ଭାବରେ ଶିଶୁ ଲୋକ ଗୀତମାନ ବଂଚି ରହନ୍ତି । ଏହିଭଳି କେତେକ ଶିଶୁ ଗୀତ ଏଠାରେ ଏକାଠି କରାଯାଇଛି । ଏ ଗୀତମାନ ବିଭିନ୍ନ ସୂତ୍ରରୁ ସଂଗ୍ରହ କରା ଯାଇଛି । ଲୋକରତ୍ନ କୁଂଜବିହାରୀ ଦାଶ ଓ ଡକ୍ଟର ନିମାଇଁ ଚରଣ ପଣ୍ଡା ଏଦିଗରେ ବହୁତ କାମ କରିଛନ୍ତି । ସେମାନଙ୍କ ଲେଖାରୁ ବହୁ ଗୀତ ଆଣା ଯାଇଛି ।

ଶିଶୁ ଲୋକ ଗୀତ ସଂଗ୍ରହ ପାଇଁ ଆହୁରି ଉଦ୍ୟମ ଆବଶ୍ୟକ । କାରଣ ଏସବୁ ଆମ ଲୋକ ସାହିତ୍ୟର ରତ୍ନ ଭଳି । ଆଶା ଏବହି ପିଲାଠୁ ବୁଢା ଯାଏ ସଭିଙ୍କର ଆଦର ଲାଭ କରିବ ।    ଇତି ।

ଭୁବନେଶ୍ୱର

ବିନୀତ,
ଭାଗୀରଥି ନେପାକ
(ଲେଖକ)

# ପିଲାଙ୍କ ଲୋକ ଗୀତ

( ପିଲାମାନେ ଗାଉଥିବା ଗୀତ )

## *ପିଲାଙ୍କ ବେଙ୍ଗୁଲି ଓଷା ଗୀତ*

ବର୍ଷା ଋତୁ ଆଗରୁ ଧାନ ବୁଣା ସରି ଯାଇଥାଏ । ବିଲରେ ଧାନଗଛ ଲହଡା ଭାଙ୍ଗୁଥାଏ । ଚାଷୀର ମନ ଖୁସିରେ ଭରି ଯାଇଥାଏ । ଏହି ସମୟରେ ଶ୍ରାବଣ-ଭାଦ୍ରବ ମାସ ଆସେ । ଏତିକି ବେଳେ ଚାଷ କାମ ପାଇଁ ଭଲ ଅସରାଏ ବର୍ଷା ଦରକାର ପଡେ । ନହେଲେ ଫସଲ ଉତୁରେ ନାହିଁ ।

ବେଳେବେଳେ ଧାରା ଶ୍ରାବଣ ମାସରେ ବର୍ଷା ହୁଏ ନାହିଁ । ଚାଷୀମାନଙ୍କ ମଧ୍ୟରେ ହା'ହୋଳ ପଡିଯାଏ । ଗାଁ ଗାଁରେ ଇନ୍ଦ୍ର ପୂଜାର ଆୟୋଜନ ହୁଏ । ଯଜ୍ଞ କରାଯାଏ । ହୋମରେ ଘିଅ ଆହୂତି ପଡେ ।

ଠିକ ଏତିକି ବେଳେ ଗାଁର ପିଲାମାନେ 'ବେଙ୍ଗୁଲି' ଓଷା କରନ୍ତି । ଗାଁର ବଡ଼ମାନେ ବି ପିଲାମାନଙ୍କୁ ଏଥିପାଇଁ ଉତ୍ସାହିତ କରନ୍ତି । ସମସ୍ତଙ୍କର ଧାରଣା, ବେଙ୍ଗୁଲି ଓଷା କଲେ ନିଶ୍ଚୟ ବର୍ଷା ହେବ । ପିଲାଙ୍କର ବେଙ୍ଗୁଲି ଓଷାରେ ଇନ୍ଦ୍ର ଦେବତା ଖୁସି ହୋଇ ବର୍ଷା କରାଇବେ । ପିଲାମାନେ ସଂଜ ହେବା ଆଗରୁ ବେଙ୍ଗ ଧରିବା ପାଇଁ ବାହାରି ପଡନ୍ତି । ସେମାନେ ବେଙ୍ଗଟିଏ ଧରି ଆଣି, ତା' ଦେହରେ ତେଲ ହଳଦୀ ଲଗାନ୍ତି । ତାପରେ ତାକୁ ଗାଧୋଇ ପାଧୋଇ ଗୋଟିଏ ସ୍ଥାନରେ ରଖି ପୂଜା କରନ୍ତି ।

ବେଙ୍ଗକୁ ପୂଜା କରି ସାରିବା ପରେ ପିଲାଟିଏ ବେଙ୍ଗୁଲି ଗୀତ ଗାଏ । ଅନ୍ୟ ସମସ୍ତେ ତାଳି ମାରି ସେ ଗୀତର ପାଳି ଧରନ୍ତି ।

ପିଲାମାନଙ୍କ ଗୀତ ଓ ତାଳିରେ ଗାଁ ଦାଣ୍ଡ ଉଛୁଳି ପଡେ ।

ସମସ୍ତେ ଏକ ସ୍ୱରରେ ଗାଆନ୍ତି –

''ବେଙ୍ଗୁଲି ନାନି ପାଏନ୍ ଦେ
ପାଏନ୍ ନାଇଁ ଦେଲେ ଧାନ୍ ଦେ ।
ଇନ୍ଦ୍ରର ରଜାର ମାଉସୀ ମରୁ
ଜୋର୍ ନଲିଆ ବଢାଇ ଦେଉ ।''

ଏ ଗୀତ ପଶ୍ଚିମ ଓଡିଶାରେ ଖୁବ ଲୋକପ୍ରିୟ । ସେହିପରି ଓଡିଶାର ଉପକୂଳ ଅଂଚଳର ପିଲାମାନେ ଇନ୍ଦ୍ର ଦେବତାଙ୍କୁ ବରଷା ହେଲେ ଖିରି ଖେଚୁଡି ଦେବେ ବୋଲି ଯାଚନ୍ତି । ସେମାନେ ଏକ ସ୍ୱରରେ ବଡ଼ ପାଟିରେ ଗାଆନ୍ତି –

''ଦେ ମହାପୁରୁ, ଦେ ଅଜାଡି
ରାତକୁ ଖାଇବୁ ଖିରି ଖେଚୁଡି ।'

## ପେଁକାଳି ବଜାଇବା ଗୀତ

ଗାଁର ପିଲାମାନେ ତାଳବରଡା, ଖଜୁରୀ ପତ୍ର, ଶାଳପତ୍ର ଆଦି ଆଣି ପିକା ଧରଣର ପେଁକାଳି ତିଆରି କରନ୍ତି । ସେଥିରୁ କେତେକ ମୁହଁରେ ଫୁଙ୍କିଲେ ବାଜେ । ତହିଁରୁ ବଇଁଶୀ ପରି ସ୍ୱର ବାହାରେ । ଆଉ କାହା କାହାର ପେଁକାଳି ବାଜେ ନାହିଁ । ସେତେବେଳେ ସେମାନେ ଗାଆନ୍ତି :

''ହାତୀ ଦେବି, ଘୋଡା ଦେବି
ମୋ ପେଁକାଳି
ବଜାଇ ଦେ - - - ବଜାଇ ଦେ ।''



ହୁଏତ ଏହା ପରେ ପେଁକାଳିକୁ ଏପଟ ସେପଟ କରି ମୋଡିଲେ କାହାରି କାହାରି ପେଁକାଳି ବାଜି ଉଠେ । କିନ୍ତୁ ସତରେ ସେ କ'ଣ ହାତୀ ଘୋଡା ନିଏ । ତଥାପି ପିଲାମାନେ ଗାଆନ୍ତି-

ମୋ ପେଁକାଳି ବାଜେ
ମୋ ପେଁକାଳି ବାଜେ
ଲଙ୍ଗଳ ଦେବି
କୁଆଳି ଦେବି
ମୋ ପେଁକାଳି ବାଜେ ।୧।
ହାତୀ ଦେବି
ଛତି ଦେବି
ମୋ ପେଁକାଳି ବାଜେ ।୨।

ହାତୀ ଘୋଡା ଦେବାତ ଦୂରର କଥା, ସେ ପିଲା ତା' ଜୀବନରେ ହାତୀ ଘୋଡା ଦେଖିଥାଏ କି ନାହିଁ, ସନ୍ଦେହ । ତଥାପି ସେମାନଙ୍କ ନାଁ ଶୁଣି ଏପରି ଗୀତ ଗାଏ । ନ ବାଜୁଥିବା ପେଁକାଳି ବାଜି ଉଠିଲେ, ପିଲାଙ୍କ ଆନନ୍ଦରେ କୁହାଟ ଛାଡି, ନାଚି ନାଚି ଗାଆନ୍ତି -

"କୁଣ୍ଡା ହାଣ୍ଡି ଦଦରା
ମୋ ପେଁକାଳି ବାଜିଲା
ସାପ ଥିଲେ ବାହାରି ଯା
ବେଙ୍ଗଥିଲେ
କଟର କଟର ହେଉଥା ।"

## "ପାଏନ୍ ବାଲା" ଗୀତ

ଓଡିଶା ଏକ କୃଷି ପ୍ରଧାନ ରାଜ୍ୟ । ଏଠାରେ ସହର ଠାରୁ ଗାଁ ସଂଖ୍ୟା ଅଧିକ । ଗାଁରେ ପ୍ରାୟ ସଭିଏଁ ଚାଷୀ । ଚାଷ ହିଁ ଗାଁ ଲୋକଙ୍କର ପ୍ରଧାନ ବ୍ୟବସାୟ । ପ୍ରତି ଗାଁରେ ଲୋକେ ଧାନ, ଆଖୁ, ପନି ପରିବା ଚାଷ କରି ଚଳନ୍ତି । ସକାଳୁ ଉଠି କୂଅ ମୂଳରେ ଯାଇ ହାଜର ହୁଅନ୍ତି । ପାଣି ତେଣ୍ଡି ଆଳୁ, ପନି ପରିବା ଆଦି ଫସଲକୁ ମଡାନ୍ତି ।



ଗାଁର ଛୋଟ ଛୋଟ ପୁଅମାନେ ନିତିଦିନ କ୍ଷେତକୁ ବା ବାଡ଼ି ବଗିଚାକୁ ପାଣି ମଡ଼ାଇବା ଦୃଶ୍ୟ ଦେଖନ୍ତି । ଏହାକୁ ସେମାନେ ନିଜର ଖେଳରେ ରୂପ ଦିଅନ୍ତି । ସେମାନେ 'ପାଏନ୍ ବଲା' (ପାଣି ବଳେଇବା) ଖେଳ ଖେଳନ୍ତି । ଏ ଖେଳରେ ଗୋଟିଏ ପିଲା ଗୋଡ ଲମ୍ବାଇ ବସେ । ତା ଉପରେ ଆଉ ଜଣେ ପିଲା ବସି ତା' ଲମ୍ବାଇଲା ଗୋଡକୁ ଏପାଖ ସେପାଖ କରେ । ସତେ ଅବା ସେ ବିଲକୁ ପାଣି ମଡ଼ାଉଛି । ଏହି 'ପାଏନ୍ ବଲା' ଅଭିନୟ କରୁ କରୁ ସେ ପାଟି କରି ଗାଏ-

"କଷି କାଂକର
ପାଏନ୍ ବଲା
ପାଏନ୍ ବଲା ।"

## ଦୋଳି ଗୀତ

'ଦୋଳି ଗୀତ' ଝିଅମାନଙ୍କର ଦୋଳି ଖେଳର ଗୀତ । ଦୋଳି ଖେଳ ବେଳେ କିଶୋରୀ ବୟସର ଝିଅମାନେ ଏ ଗୀତ ଗାଆନ୍ତି । ଏଥିରେ ପୁଅମାନଙ୍କର ଭାଗ ନାହିଁ ।

ଓଡିଶାର ଉପକୂଳବର୍ତ୍ତୀ ଅଂଚଳରେ ଦୋଳ, ରଜ ଓ କୁଆଁର ପୂନେଇ ପରବମାନ ଢାକଜମକରେ ପାଳନ କରାଯାଏ । ଏହି ପରବ ଦିନମାନଙ୍କରେ ଗାଁର କୁମାରୀମାନେ ଏକାଠି ହୋଇ ଦୋଳି ଖେଳନ୍ତି ।

ଖେଳ ଆଗରୁ ଦୋଳି ସଜ ହୋଇଥାଏ । ଗଛ ଶାଖାରେ ଶକ୍ତ ଦଉଡି ଭିଡାଯାଇ ଦୋଳି କରା ଯାଇଥାଏ । ନହେଲେ ଦୁଇଟି ଉଚ୍ଚ ଖମ୍ବ ପୋତାଯାଇ ଦୋଳି ସଜ ହୋଇ ଥାଏ । ଗାଁ ଗହଳରେ ଗଛ ଶାଖାରେ ଦୋଳିର ବନ୍ଦୋବସ୍ତ ହୁଏ । ସହରରେ ଖମ୍ୱ ପୋତା ହୋଇ ଦୋଳି କରାଯାଏ ।




ଦୋଳ, ରଜ, କୁଆଁର ପୂନେଇ ବେଳେ ଅବିବାହିତା ଝିଅମାନେ ଦୋଳି ଖେଳ ପାଇଁ ଏକାଠି ହୁଅନ୍ତି । ଝିଅମାନଙ୍କ ଭିତରୁ ଜଣକୁ 'ଦୋଳ ରାଣୀ' କରାଯାଏ । ସେ ଯାଇ ଦୋଳିରେ ବସେ । ଅନ୍ୟମାନେ ତାକୁ ଦୋଳାନ୍ତି ଓ ଦୋଳି ଛନ୍ଦରେ ଗୀତ ଗାଆନ୍ତି ।

ସେ ଦିନ ଦୋଳିରେ କଜ୍ଜଳ, ସିନ୍ଦୂର ଦିଆଯାଏ । ତାକୁ ଫୁଲମାଳରେ ସଜାଇ ବନ୍ଦାଣ କରାହୁଏ । ତାପରେ ଦୋଳି ଖେଳ ଓ ଦୋଳି ଗୀତ ଆରମ୍ଭ ହୁଏ । ଏ ସମୟରେ ଝିଅମାନେ ଗାଆନ୍ତି –

ଦୋଳି ମୁଣ୍ଡେ ଦେଲି କଳା
ପ୍ରଥମେ ବନ୍ଦିଲି ସର୍ବ ମଙ୍ଗଳା
ସରଚି ଉଠିବ ଗଳା ।

ଦୋଳି ଦିନ ଆସିଲେ ଗାଁ, ସହର, ପୁରପଲ୍ଲୀ ସବୁଠି କୁମାରୀ କଣ୍ଠର କୋମଳ, ମଧୁର ଗୀତ ଶୁଣାଯାଏ । ସେହି କଣ୍ଠ ସ୍ୱର ସାରା ପରିବେଶକୁ ସରସ, ସଜୀବ କରିଦିଏ ।

ଏ ଗୀତରେ କୁଆଁରୀ କନ୍ୟାର ହସ କାନ୍ଦ, ସୁଖ ଦୁଃଖର କଥା ନେସି ହୋଇଥାଏ । ସେ ନିତି ଦିନିଆ ଜୀବନରେ ଯାହା ଦେଖେ, ଶୁଣେ ଓ ଅଙ୍ଗେ ଲିଭାଏ ସେ ସବୁକୁ ତାରି ଦୋଳି ଗୀତରେ ରୂପ ଦିଏ । ଏଥିରେ ପରିବାର, ସମାଜ, ପ୍ରକୃତି ଆଦି ବିଷୟରେ ନିଖୁଣ ବର୍ଣ୍ଣନା ଥାଏ ।

ଦୋଳି ଗୀତ ସବୁ ପ୍ରାୟ ତିନି ଧାଡିଆ । ଏହା ଆକାରରେ ଛୋଟ ହେଲେ ବି ଏକ ସଂପୂର୍ଣ୍ଣ ଚିତ୍ର ଦେଇଥାଏ । ପୁଣି ତାରି ଭିତରେ ମନର ଭାବ ଅତି ସୁନ୍ଦର ଭାବରେ ପ୍ରକାଶ ପାଇଥାଏ ।

ଦୋଳି ଗୀତରେ ସ୍ୱର ଖୁବ ପ୍ରଭାବଶାଳୀ । ଏହା କାନରେ ପଡ଼ିବା ମାତ୍ରେ ମନକୁ ଆଲୋଡ଼ିତ କରେ । ଏ ଗୀତ ସବୁବେଳେ ଗାନ କରାଯାଏ । ନ ଗାଇ, ଖାଲି ଖାଲି ପଢ଼ିଲେ ଏହାର ରସ ଆସ୍ୱାଦନ କରି ହୁଏ ନାହିଁ ।

ଗାଁ ଗହଳରେ ଝିଅମାନେ ଦୋଳି ଖେଳ ଦିନ ଆସିବା ଆଗରୁ ଗାଁରେ ଏକାଠି ହୋଇ ଦୋଳି ଗୀତ ଗାଇବା ଆରମ୍ଭ କରି ଦିଅନ୍ତି । ପଦେ ବି'ପଦ ନୂଆ ଗୀତ ଥିଲେ, ତାକୁ ଘୋଷି ମୁଖସ୍ଥ କରନ୍ତି । ସେମାନଙ୍କ ଓଠରେ ଦୋଳିଗୀତମାନ ଲହଡ଼ା ଭାଙ୍ଗେ । ଦୋଳିରେ ବସିଲେ ସେ ଗୀତମାନ ଓଠରେ ଫୁଲ ପରି ଗୁଂଫା ଗୁଂଫା ହୋଇ ଫୁଟି ବୁଣି ହୋଇଯାଏ ।

ଗାଁ, ଗାଁ ପାଖ ବନ-ଝରଣା- ଆକାଶ,ସହର, ସବୁଠି କୁଆଁରୀ କଣ୍ଠର ମହୁଝରା ଦୋଳି ଗୀତ ଜୀବନ ଓ ପ୍ରକୃତିକୁ ସରସ, ସଜୀବ କରିଦିଏ ।

# ଦୋଳି ଗୀତ

ଆସ ଗୋ ସଙ୍ଗାତ ଆସ
ଝୁଲଣା ଖେଳିବା ହୋଇ ହରଷ
ମୋ ସହି ସଙ୍ଗାତ ଗୋ
ମନରେ କିମ୍ପା ବିରସ ।
ଆସ ଆସ ଗୋ ବଉଳ
ଝୁଲଣିରେ ବସ ହୋଇ ଚଞ୍ଚଳ ଗୋ
ମୋ ପେଛି ବଉଳ ଗୋ
ତୋତେ ସଜାଇବ ଫୁଲ ମାଳ
. ମୋ ବଉଳ ଗୋ ।
ଆସ ଆସ ଗୋ ଅଭଡା
ଝୁଲଣିରେ ବସ ବାନ୍ଧିଣ ଜୁଡା ଗୋ
ମୋ ପେଣ୍ଟି ଅଭଡା ଗୋ
ଆଣ୍ଠ କରି ଧରିବ ଦଉଡା ।
ଆଜି ତ କୁଆଁରୀ ଚାନ୍ଦ
କୁଆଁରୀ ଝିଅର ମନ ଆନନ୍ଦ ଗୋ
ମୋ କଷି ପିଆଜ
ଏଥିପାଇଁ କିଆଁ ଲାଜ ।
ଜୁଲି (ଦୋଳି) କରେ କଟ କଟା
ତୁଲିକି ଦେବି ମୁଁ ସୁନା ମୁକୁଟ
ଜୁଲି ନ କର ତୁ କେଁ କଟ ।

x x x

ଦୋଳି ଉଡେ ସାଇଁ ସାଇଁ
ମୋ ଭାଇ ଯୁଦ୍ଧରୁ ଫେରିବା ପାଇଁ
ଦୁଆରେ ବସିଛି ଚାହିଁ ।
କଳିଙ୍ଗ ଅଙ୍ଗ ଜିଣିବ
ହାତୀ ଘୋଡା ଚଢ଼ି ପଟୁଆର କରି
ଭାଇ ମୋର ଆସୁଥିବ ।

## ପ୍ରେମ ପାଇଁ ଢୋଳି ଗୀତ

ପଥର ଗଡାଇ ଦେଲି
ଏଡେ ଦଗାଦିଆ ଜାଣି ନଥିଲି ।
ବଚନରେ ଭୁଲି ଗଲି
ମୋ ସଜନୀ ।
ରସୁଣ ଖାଇଲା ପୋକ
ଦିନେ ହସି ଦେଲେ ଯିବ କି ଦୁଃଖ
ଯେତେ ହେଲେ ପରଲୋକ
ମୋ ସଜନୀ ।
ହାତୀ ବାଳ କେରି କେରି
ଛାଡି ଗଲ ମୋତେ ଅନ୍ତର କରି
ବଂଚିବି ମୁଁ କେଉଁପରି
ମୋ ସଜନୀ ।
ଅଧ ରାତି ଉଦେ ଜହ୍ନ
ଦୁତିଆ ଜହ୍ନକୁ ଦେଖିବି ବୋଲି
ମନ ହେଲା ଛନ ଛନ
ମୋ ସଜନୀ ।

## ବଧୂର କରୁଣ ଜୀବନକୁ ନେଇ ଢୋଳି ଗୀତ

ମହାନଦୀ ମାଛ ସର ସରୁକା ଲୋ
ବୁଲାଇ ପକାଏ ଘିଅ
ରହିବରେ ମାଛ ଗୋଟି ଗୋଟି ହୋଇ
ଆମେ ପରା ପରଝିଅ ।
ମହାନଦୀ ମାଛ ସରୁ ସରୁକା ଲୋ
ବୁଲାଇ ପକାଏ ଘିଅ
ପାଆଁଶ ଟଙ୍କାକୁ ଡରିଲ ହେ ବାପା
ଦରିଆରେ ଦେଲ ଝିଅ ।

## ମୃତ୍ୟୁ ପାଇଁ ଦୋଳି ଗୀତ

ଆହାରେ କୁସୁମ କଢି
ତୋ ଗୋଡେ ଲାଗିଛି ଯମ ଦଉଡି
ଆତମା ଯାଉଛି ଛାଡି ।
ଆମ୍ଭ ଛାଡିଗଲା ବେଳେ
ଛ' ଖଣ୍ଡି କାଠରେ ମଣ୍ଡ ବାନ୍ଧିବେ
ମଶାଣି ଭୂମିକି ନେବେ ।
ମଶାଣି ଭୂମିକି ନେଇ
ବାଲି ରଖି ତୋତେ ଦେବେ ଭସାଇ
କାନ୍ଦୁଥିବେ ବାପ ଭାଇ ।
କାନ୍ଦୁଥିବେ, କାନ୍ଦୁଥିବେ
ଦଶ ରାତି ଗଲେ କ୍ଷର ହୋଇବେ
ମଣିଷ ରୁଣ୍ଡାଇ ନେବେ ।
ମଣିଷ ରୁଣ୍ଡାଇ ନେବେ
ଏଗାର ଦିନରେ ମହୁ ଖାଇବେ
ତୋ ନାମ ଲୁଚାଇ ଦେବେ ।

## ଦୋଳ ଗୀତରେ ପ୍ରତିଯୋଗିତା

ଦୋଳ ଗୀତରେ ପ୍ରତିଯୋଗିତା ବି ହୁଏ । ଦୁଇଟି ଦୋଳିରେ ଦୁଇଜଣ 'ଦୋଳିରାଣୀ' ବସିଥାନ୍ତି । ଦୁଇ ଦଳ ଝିଅ ଦୋଳରାଣୀଙ୍କୁ ଦୋଳାଇ ଦୋଳାଇ ଗୀତ ବୋଲନ୍ତି ।

ଗୋଟିଏ ଦଳ ଦୋଳିଗୀତ କରିଆରେ ପ୍ରଶ୍ନ ପଚାରେ । ଅନ୍ୟଦଳ ସେହି ଗୀତରେ ଉତ୍ତର ଦିଏ । ପ୍ରଶ୍ନକୁ ଦେଖି ଉତ୍ତର । ଏଣୁ ତେଣୁ ଗାଇଲେ ହୁଏ ନାହିଁ । ଅଟକି ଗଲେ ହାର ହୁଏ ।

ପୁରୁଣା 'ଦୋଳି ଗୀତ' ଛଡା ମୁହେଁ ମୁହେଁ ବି' ଗୀତ ଯୋଡା ହୁଏ । ଚାଲାକ ଚତୁର ଝିଅ ଦଳ ଜିତି ଯାଆନ୍ତି । ଦେଖଣାହାରୀ ଥିଲେ, ତାଳି ମାରି ସାବାସୀ ଦିଅନ୍ତି । ହାରିଯାଇଥିବା ଦଳ ପୁଣି ପ୍ରସ୍ତୁତ ହୁଅନ୍ତି । ଆଉ ଥରେ ଦୋଳିଗୀତ ଆରମ୍ଭ ହୁଏ ।

କିଏ କେତେ ଥର ହାରିଲା ହିସାବ ରହେ । ସେଇଥିରୁ ହରାଜିଣା ଜଣା ପଡେ ।

ପ୍ରଶ୍ନ-

ହୁଁ କଲା ହନୁମନ୍ତ
ଦୋଳି ଗୀତ ଯାକ କେଉଁଠୁ ଜାତ ?
ବୁଝାଇ କହିବୁ ସତ ।

ଉତ୍ତର-

ହୁଁ କଲା ହନୁମନ୍ତ
ଦୋଳିଗୀତ ଯାକ ମନରୁ ଜାତ
ବୁଝାଇ କହିଲି ସତ ।

ଏହିପରି ଅନେକ ପ୍ରଶ୍ନ ଉତ୍ତର । ଦୋଳି, ଦୋଳିଗୀତ, ସମାଜ, ପରିବାର, ଜୀବନ ବିଷୟରେ ଏ ପ୍ରଶ୍ନ ଆଉ ଉତ୍ତର । 'ଦୋଳି ରାମାୟଣ'ରେ ରାମାୟଣ କଥା ବର୍ଣ୍ଣନା ହୋଇଛି । ସେହିପରି 'ଦୋଳି ବାରମାସୀ' ବି ଅଛି ।

## ପିଲାଙ୍କ ଲୋକ ଗୀତ

(ମାଆ ଗାଉଥିବା ଗୀତ)

ଯେଉଁ ଘରେ ଶିଶୁ ବା ପିଲା ନାହିଁ, ସେ ଘର ଘର ନୁହେ । ଶିଶୁ ହିଁ ବାପ ମାଁ ଓ ପରିବାରର ବଡ଼ ସଂପଦ । କୁଟୀର ଠାରୁ କୋଠାଘର ଯାଏ, ସବୁଠି ଶିଶୁ ଶ୍ରେଷ୍ଠ ଧନ ହୋଇ ରହିଛି । ଶିଶୁଟିଏ ପାଇବା ପାଇଁ ବାପ ମାଁ କେତେ ଯେ ଓଷା ବ୍ରତ, ପୂଜା ପର୍ବାଣୀ କରନ୍ତି, ତାର ହିସାବ ନାହିଁ ।

ଶିଶୁ ପାଇଁ ମାଆର କେତେ ଯେ ସ୍ନେହ ମମତା ରହେ, ତା' କଳି ହେବ ନାହିଁ । ଶିଶୁକୁ ହସ ଖୁସିରେ ରଖିବା ପାଇଁ ମାଆ ଅନେକ ଉପାୟ କରେ । ଶିଶୁକୁ ଶୁଆଇବା, ଖେଳାଇବା, ହସାଇବା, ଅଝଟ ହେଲେ ତୁନି କରାଇବା ପାଇଁ ସେ ଗୀତ ଗାଏ । କୋଳରେ ବସାଇ ଝୁଲାଇବା, ଠିଆ କରାଇ ନଚାଇବା, ଗେଲ କରିବା ବେଳେ ମାଆ ବିଭିନ୍ନ ଧରଣର ଗୀତ ଗାଏ ।

ମାଆ ଯେଉଁ ଗୀତ ଗାଏ, ତାର ଅର୍ଥ ନ ବୁଝି ବି' ଗୀତର ସ୍ୱର ଲହରୀ ଶୁଣି ଶିଶୁ ଖୁସି ହୁଏ । ଆଉ କେତେବେଳେ ମାଆ ନାନା କଥା କହି, ଅଝଟ ପିଲାକୁ ଶାନ୍ତ କରେ ।

ଗୀତ ଓ କଥା ଶୁଣୁ ଶୁଣୁ ଶିଶୁ ଦୁଧ ପିଏ, ଭାତ ଖାଏ, ହସେ ଓ ଶୋଇପଡେ । ଛୋଟ ଶିଶୁକୁ ହସାଇବା ପାଇଁ ସବୁ ମାଆ ଚେଷ୍ଟା କରନ୍ତି । ଶିଶୁକୁ ହସାଇ ସେମାନେ ବି' ହସନ୍ତି । ମାଆ ଶିଶୁକୁ କୋଳରେ ଧରି ତାର ଛୋଟ ଛୋଟ ହାତ ପାପୁଲିରେ ଅଙ୍ଗୁଳି ରଖେ ଓ ସେହି ଅଙ୍ଗୁଳିକୁ ପାପୁଲିରୁ ଆସ୍ତେ ଆସ୍ତେ କରି ହାତ ଉପର ଦେଇ ଚଲାଇ କାଖ ସନ୍ଧିରେ ଗୁଦୁ ଗୁଦୁ କରେ ।

ସେତେବେଳେ ମାଆ ଗାଏ-

"କାଳିଆ ବଳଦ
ଗଲାରେ ଗଲା - - - ଗଲା" - - -

ବାସ ଏତିକି । ଏହାକୁ ସେ ବାରମ୍ବାର ଉଚ୍ଚାରଣ କରେ । ପିଲା ଆନନ୍ଦରେ କଳ କଳ ହୋଇ ହସି ଉଠେ । ମାଆର ଖୁସି ଦେଖେ କିଏ ?

## ପିଲାଙ୍କୁ ହସାଇବା ଗୀତ

(ଲେଉିରେ ଆଙ୍ଗୁଠି ଦେଇ)

ଟୁଉକୁ ମୂଷି
ଟୁଉକୁ ମୂଷି
ଧାନ ଭରଣକ ଖାଉଥା ବସି,
ତୁ ଥା ମୁଁ ଯାଉଛି ରୁଷି ।

(କନିଷ୍ଠ ଆଙ୍ଗୁଠି ଧରି) - ଏଉଟି ବୋଇଲା କିସ ଖାଇବା
(ଅନାମିକା ଆଙ୍ଗୁଠି ଧରି) - ଏଉଟି ବୋଇଲା କାହୁଁ ଆଣିବା
(ମଧ୍ୟମା ଆଙ୍ଗୁଠି ଧରି) - ଏଉଟି ବୋଇଲା କାହୁଁ ଶୁଝିବା
(ଅଙ୍ଗୁଷ୍ଠ ଆଙ୍ଗୁଠି ଧରି) - ବୁଢା ଚେଡିପ ଥାଇ ବୋଇଲା
ଗାଇ ଦେଇ ପଳାଇବା
ଗଲାରେ ଗଲାରେ, କାଳିଆ ବଳଦ ଗଲାରେ ।
(ବାହୁରେ ଧୀରେ ଧୀରେ ଆଙ୍ଗୁଠି ଚଳାଇ କାଖଯାଏ ନେବା)

x x x

ତାଳି ତାଳି ବନମାଳୀ
ତାଳି ତାଳି ବନମାଳୀ
ତାଳି ସର ତାଳି ସର
ଟୋକେଇ କୁଣ୍ଢେଇ ସଜ କର
ଘେନି ପଳେଇବା ଘୁମୁସର ।
(ଶିଶୁର ଦୁଇ ହାତ ପାପୁଲିରେ ତାଳି ମରାଇବା ।)

## କୋଳରେ ଝୁଲାଇବା ଗୀତ

ଶିଶୁ କାନ୍ଦିଲେ, ତା' କାନ୍ଦ ବନ୍ଦ କରିବା ପାଇଁ ମାଆ ତାକୁ କୋଳରେ ଧରେ । କୋଳରେ ବସାଇ ଝୁଲାଇଲେ ଶିଶୁକୁ ଆରାମ ଲାଗେ । ତା' କାନ୍ଦ ବନ୍ଦ ହୋଇଯାଏ । ଶିଶୁକୁ କୋଳରେ ଧରି ଝୁଲାଉ ଝୁଲାଉ ମାଆ ଗୀତରେ ତାଳ ପଡେ ।



ଝୁଲଣର ଆରାମ ସାଙ୍ଗକୁ ଗୀତ ଲହର ଶିଶୁ ଆଖିରେ ନିଦ ଭରିଦିଏ । ତା' କାନ୍ଦ ଆପେ ବନ୍ଦ ହୋଇଯାଏ । ସେ ଶୋଇପଡେ ।

ମାଆ ଗାଏ-

"ଝୁଲ୍‌ରେ ହାତୀ ଝୁଲ୍
ବାଆ ପାଣି ଖାଇ ଫୁଲ୍ ।
ହାତୀଟି କାଳିଆ ଅସଲ ମେଳିଆ
ନ ଜାଣଇ ଖାଲ ଖମା
ଗୋପପୁରେ ଥାଇ ଦୁଧସର ଖାଇ
ହୋଇଛି ଧୂସର ଧୂମା
ମୋ ହାତୀ ଝୁଲ୍‌ରେ
ବାଆ ପାଣି ଖାଇ ଫୁଲ୍‌ରେ ।"
ଝୁଲୁ ହାତୀ, ଝୁଲୁ ହାତୀ
ଝୁଲିରେ ଖାଇବୁ ଖଣ୍ଡ ଛାଟି ।
ହାତୀ ଝୁଲୁରେ

ବାଆ ପାଣି ଖାଇ ଫୁଲୁରେ ।
ହାତୀ ଯାଇଥିଲା ନଅର
ହାତୀ ମୁଣ୍ଡରେ ମୋ ସୁନା ଚଅଁର ।
ମୋର ହାତୀ ଧାଇଁ ସେ ଲସର ପସର
କିଆ କନ୍ଦା ଖାଇବାକୁ
ମୋର କହ୍ନାଇ ଧାଇଁ ଯେ ଲସର ପସର
ବୋଉ ଦବ ଖାଇବାକୁ ।

## ମଥାରେ ତେଲ ଘଷିବା ଗୀତ

ତା ତା ନାଡି
ତା ତା ନାଡି
ବେଙ୍ଗ ଦେଲେ ପାଡି
ବେଙ୍ଗ ଚେଡି ଯେ ପଳାଇ ଗଲେ
ଅଡା ପିଡା ଦେଉ ନ ଗଲେ ।
ବେଙ୍ଗଙ୍କ ଘରେ କି କି ତିଉଣ
ପୋକ ସାଉଁ ସାଉଁ ହାଣ୍ଡିଏ ତୁଣ ।

## ପିଲାଙ୍କୁ ଖୁଆଇବା ଗୀତ

ଗିଲି ଗିଲି ଗୁଣ୍ଡି
ଗିଲି ଗିଲି ଗୁଣ୍ଡି
ପାକୁ ପାନେ
ମା ଠୋଉ ଯାଇ କଉଡି ଆଣେ
ମା ବୋଇଲା କଉଡି ନାହିଁ
ଝଲକ ଲଡୁଟି ପାଇବୁ କାହିଁ ।

x x x

ପକେଇ ଦେଲି ଖତ କୁଦକୁ
କୁଆ ନେଇଗଲା ମାମୁଁ ଘରକୁ ।
ମାଇ ବୋଇଲା ଏଉଟି କିଏ
ମାମୁଁ ବୋଇଲେ ଭଣଜା ଇଏ
ଧୋଇ ଧାଇ କରି ଘରକୁ ନେଏ ।
ଦୁଧ ଭାତ କରି ଗୁଣ୍ଡିଏ ସେ
ଭାଡି ତଳେ କିନା ଗଡେଇ ଦେ ।

## ତେଲ ହଳଦୀ ଲଗେଇବା ଗୀତ

**ପୁଅ ପାଇଁ**

କେରାଣ୍ଡି ମାଛର କାତି
ମୋ ପ୍ରେମ ସୁନ୍ଦର ବାହା ହୋଇ ଯିବରେ
ଚନ୍ଦ୍ର ସୂର୍ଯ୍ୟ ବରଜାତି ।

କଅଁଳ କଖାରୁ ଭାରେ
ମୋ ପ୍ରେମ ସୁନ୍ଦର ବାହା ହୋଇ ଯାଉଥିବ ଲୋ
ତେଲଙ୍ଗି ବାଇଦ ସାରେ ।
ନଳି କା'ନିକାର ଗଜ
ମୋ ପ୍ରେମ ସୁନ୍ଦରର ଯେତେବେଳେ ପାଲିଙ୍କି ସଜ ଲୋ
ଭଗାରି ପାଇବେ ଲାଜ ।

## ଝିଅ ପାଇଁ

ମରି ଯାଉଥାଏ ମୋର
ମାଆ ସାଆନ୍ତାଣୀ ରାଣୀ
ମୋ ଦେଇଥିବା ଘଡ ମାଳିଆ ଘରେ ମୋ
ଘଉଡେ ବୋହିବେ ପାଣି ।

ମାଆ ସାଆନ୍ତାଣୀ ପଟା ପିଢା
ମୋ ପୋଇଲି ଲାଗିବେ ଶହେ ଘୋଡା ।

ମୋ ମାଆକୁ ମାଇଲା ଶାଶୁ
ଦେଇ ପଠାଇବି ଚଉଡା ଗଉଡ
ମୋ ମାଆ ଶାଶୁ ଘର ଆସୁ ।

## ଶିଶୁକୁ ନଚାଇବା ଗୀତ

ସବୁ ମାଆର ଗଣ୍ଠିଧନ ହେଉଛି ଶିଶୁ । ଶିଶୁକୁ ନେଇ ମାଆର ସଂସାର । ଶିଶୁ ମୁହଁରେ ହସ ଦେଖିଲେ ତା' ପେଟ ପୂରି ଯାଏ । ତାକୁ ସେ ଖେଳ କରେ, ନଚାଏ ।ଶିଶୁକୁ ନଚାଇବା ପାଇଁ ମାଆ ଗୀତ ଗାଏ । ମାଆର ଗୀତର ତାଳେ ତାଳେ ଶିଶୁ ନାଚେ ।



ଶିଶୁକୁ ନଚାଇବା ପାଇଁ ମାଆ ଯେଉଁ ଗୀତ ଗାଏ, ତାର କିଛି ଅର୍ଥ ବାହାରେ ନାହିଁ । ତଥାପି ତାର ଛନ୍ଦ, ସ୍ୱର ଲହର ଶିଶୁକୁ ଖୁସି କରେ । ସେ ସେହି ଗୀତ ଶୁଣିଲେ ଆପେ ଆପେ ଢଳି ଢଳି ନାଚେ । ଶିଶୁର ନାଚ ଦେଖିଲେ ମାଆର ମନ ନାଚି ଉଠେ । ଓଡିଶାର ବିଭିନ୍ନ ଅଂଚଳରେ ଶିଶୁକୁ ନଚାଇବା ପାଇଁ ବିଭିନ୍ନ ଗୀତ ବୋଲା ଯାଇଥାଏ । ତାର କେତୋଟି ନମୂନା ଦିଆଗଲା ।

ତା ଥେଇକି
ତା ଥେଇକି
ମାଧିଆ ମାଇଲା କୁଣ୍ଡା ଖାଇକି
ଆଉ କୁଣ୍ଡାଖାଇ ଘରେ ଥାଇକି ?
ତା ଧେଇ ଧେଇ ନନ୍ଦେ
ତାଳ ବାଡିକି ତାଳ ଖାଇଗଲେ
ଗୋଡେଇ ମାଇଲେ କନ୍ଧେ ।
ଧେଇ କିରେ ମୋର ଥେଇ କିରେ ।
ମୋ ରକ୍ମୁଣୀ ପେଟିଆ ଲାଉ
ମୋ ଧନକୁ ଯେ ମନ୍ଦ ମନାସିବ
ତଳି ତଳା ହୋଇ ଯାଉ ।

## ପଶ୍ଚିମ ଓଡିଶାରେ ଶିଶୁ ନାଚର ଗୀତ

ଧେଇକି ଦେଇକି ନାଟ
ଶାଗ ପାନି ଖିଆ ପେଟ ।
ତାଇ ସରରେ ତାଇ ସର
ଫୁଲ ମାଳ କରି ସଜ କର ।
ନାନୀ ଯିବ ପରା ଶାଶୁଘର ।

ତାଇକି ତାଇକି ଧିନା
ଅଣ୍ଡା ଭଙ୍ଗା ଗିନା
ଶାଶୁଘର ଭାଗିଗଲେ
ମାଆ ଘର ଚୁନା ।

ହୁରୁରେ ମାରୁ
କେଉଟ ଘରର ସାରୁ
ଲିଆ ମୁରହି ଖାଏମି ବୋଲି
ଭୁରିଆ ଭୁରି କରୁ
ଦେ ଧେଇକି ନାଚ
ତାଧେଇ ତାଧେଇ ନାଚ
ତାକ ଧେଇ ନାଚ
ନାଚ ପାହାରେ
ପୁରୀ ଠାକୁର ଦେଉଳ ଦୁଆରେ
ମୋଟ ନଟ ନାଚ ମନ୍ଦିର
ନାଟୁଏ ପଶିଲେ କୋଉ ମନ୍ଦିର?
କୃଷ୍ଣ ନାଚୁଥିବେ ଥେଇକି ଥେଇ
ଅଣ୍ଟାରେ ଘାଗୁଡି ତଳକୁ ଥୋଇ ।

## ଶିଶୁର କାନ୍ଦ ବନ୍ଦ କରିବା ପାଇଁ ଗୀତ



ଶିଶୁମନ ଅବୁଝା । ସେ ଖେଳଣା ପାଇଁ, ଖାଇବା ପାଇଁ ଅଝଟ ହୋଇ କାନ୍ଦେ । ଭୋକ କଲେ, ଶୋଷ କଲେ ବି' କାନ୍ଦେ । କାନ୍ଦିବା ହିଁ ତାର ବଳ । ତାରି ଜରିଆରେ ସେ ତାର ସବୁ ଦାବି ହାସଲ କରେ ।

ଶିଶୁ ଯେଉଁଥି ପାଇଁ କାନ୍ଦୁ ପଛକେ, ମାଆ ତାହା ସହି ପାରେ ନାହିଁ । ସେ ତାକୁ ବୁଝାଇ ଶୁଝାଇ ଗୀତ ଗାଇ ଶିଶୁର କାନ୍ଦ ବନ୍ଦ କରେ । ମାଆ ସ୍ନେହ ବୋଳା କଣ୍ଠରେ ଗାଏ-

''ମୋ କୁନାକୁ କିଏ ମାଇଲା ମାଡ
ଭାଙ୍ଗି ପକାଇଲା ପିଞ୍ଜରା ହାଡ
ନେଇ ମାମୁଁ ଘରେ ଛାଡ ।
ମାମୁଁ କହିଲେ ଏଇଟି କିଏ
ମାଇଁ କହିଲେ ଭଣଞ୍ଜା ଟିଏ
ଧୋଇ ଧାଇ କରି ଘରକୁ ନିଅ
ଦୁଧ ଭାତ କରି ଗୁଣ୍ଡାଏ ଦିଅ
ଖଟ ପଲଙ୍କରେ ଶୁଆଇ ଦିଅ ।''

କୁନା ପରି କିଏ ହବ ?
ଉଡି ଯାଉଥିବା ସୁନା ପଞ୍ଜୁରୀରେ
ଶୁଆ ଧରି ଆଣି ଦବ ?

ଆ ଜହ୍ନ ମାମୁଁ ଶରଦ ଶଶୀ
ମୋ କାହ୍ନୁ ହାତରେ ପଡରେ ଖସି ।
ଆ ଆ ଜହ୍ନ ମାମୁଁ ଆ ଆ
ପାଟ କାଛଟିକୁ ଦେଇ ଯା ।
ଗୋଟିଏ ହେଲେ କାହ୍ନୁ ମୋର ହସିବ
ଦୁଇଟି ହେଲେ ପୀଢା ମାରି ବସିବ ।

ବାଇ ଚଢେଇରେ ବାଇ ଚଢେଇ
ବାଟରେ ବାନ୍ଧିଛୁ ବସା
କୁନା ତ ଆମର ବଡ଼ ଖବିଶା
ଭାଙ୍ଗି ଦେବ ତୋର ବସା ।

# ଶିଶୁ ଶୁଆଇବା ଗୀତ

ନିଦ ଆସିଲେ, ଶିଶୁର ଆଖି ଟଳ ମଳ ହୁଏ । ସେ ରାହା ଧରି କାନ୍ଦେ । ମାଁ ତା' ମନ କଥା ବୁଝି ତାକୁ କାନ୍ଧେଇ ପକାଏ । ଜାତି ଜାତିକା ଶୁଆଇବା ଗୀତ ଗାଇ ପିଲାକୁ ଶୁଆଇ ପକାଏ ।

ଆଉ ବେଳେବେଳେ ଅବୁଝା ହୋଇ, ଅଝଟ ହୋଇ ଶିଶୁ କାନ୍ଦେ । ଯେତେ ଯାହା କଲେ ବୁଝେ ନାହିଁ । କାନ୍ଦି କାନ୍ଦି କ୍ଲାନ୍ତ ହୋଇଯାଏ । ମାଆ ତାକୁ କୋଳେଇ, କାନ୍ଧେଇ ଶିଶୁ ଶୁଆଇବା ଗୀତ ଗାଏ । ତାର ଅମାନିଆ ମନ, ଚଗଲା ପ୍ରକୃତି ଶାନ୍ତ, ମଧୁର ଓ ସୁନ୍ଦର ହୁଏ ।

ଦିନ ଥିଲା, ମାଆମାନେ ଘରେ ଘରେ, ପୁରେ ପୁରେ ଶିଶୁକୁ ଶୁଆଇବା, ଖୁଆଇବା, ନଚାଇବା ପାଇଁ ଭଳିକି ଭଳି ଗୀତ ଗାଉଥିଲେ । ଏବେ ସେ ଗୀତ ମାନ ଭୁଲି ଗଲେଣି ।

ଅଥଚ ମାଆ ମୁହଁର ସେ ଗୀତମାନ କେତେ ମଧୁର, ଉଦାର ଓ ସ୍ନେହଶୀଳ ନଥିଲା ! ତହିଁରୁ ଓଡ଼ିଆ ଜାତିର ମନର ପରିଚୟ ମିଳୁଥିଲା ।

ସେଥିରୁ କେତୋଟି ବଛା ବଛା ଗୀତ ଏଥିରେ ଦିଆଗଲା-

ଧୋରେ ବାୟା ଧୋ
ଯୋଉ କିଆରୀରେ ଗହଳ ମାଣ୍ଡିଆ
ସେହି କିଆରୀରେ ଶୋ
ଆମ ମାଉସୀ ଆମ ପଉସୀ
ନିଦ ଦେଇ ଯାଉଥା
ପାନ ବିଡ଼ି ବିଡ଼ି ଗୁଆ ପେଡ଼ି ପେଡ଼ି
ବଟୁଆ ପୂରେଇ ଖାଆ

X X X

ଧୋରେ ବାୟା ଧୋ
ଗହଳ ମହଳ ଧାନ କିଆରୀ
ସେହି କିଆରୀରେ ଶୋ ।
ପୂନେଇ ବାଆରେ ମେଘ ବରଷିଲା!
ଟୁପୁରୁ ଟୁପୁରୁ ପାଣି

ସାରୁ ଗଛ ମୂଳେ ବେଙ୍ଗୁଲୀ ନାନୀ
ଆପେ ବୋଲାଉଛି ରାଣୀ ।
କଳର ବିନା ରେ ବାଇ ଚଢେଇ
ବାଡି ପନ୍ଦାଡରେ ଥାଆ
ରାଧିକା କାନ ମୋଚି ମୋଚି
କହ୍ନେଇ କାନ ଖାଆ ।
ସବୁ ପିଲାଏ ତ ଖେଳି ଅଇଲରେ
ମୋ ପ୍ରେମ ସୁନ୍ଦର କାହିଁ
ଝାଡେ ପଶି ଝାଡ କୋଳି ଖାଉଚି ସେ
ଆଙ୍କୁଡି ଖଣ୍ଡ ଲଗାଇ ।

X X X X

ନିଦ ଘର ଯାଉରେ ବାବୁ
ନିଦ ଘର ଯାଉ
ଯେଉଁ କିଆରୀରେ ଗହଳ ମାଣ୍ଡିଆ
ସେହି କିଆରୀରେ ଶୋଉ ।
(ପଶ୍ଚିମ ଓଡ଼ିଶା)
ନିଦ ମାଉସୀ ନିଦ ମାଉସୀ
ନିଦ ଦେଇ ଯାଆ
ପାନ ବିଡି ବିଡି ଖୁଆ ପେଡି ପେଡି
ବଟୁଆ ପୂରାଇ ଖାଆ ।

କଳର ବିନାରେ ବାଇ ଚଢେଇ
ବାଡି ପନ୍ଦରାରେ ଥାଆ
ଟୁନିଆ କାନ ମୋଚି ମୋଚିକା
ସୁନିଆ କାନ ଖାଆ ।
ସବୁ ପିଲା ତ ଖେଳି ଅଇଲେ
ମୋ ପ୍ରେମ ସୁନ୍ଦର କାହିଁ ?
ଝାଡେ ପଶି ଝାଡ କୋଳି ଖାଉଚି
ଆଙ୍କୁଡି ଖଣ୍ଡେ ଲଗାଇ । (ପୁରୀ ଅଂଚଳ)

ଧୋରେ ବାଇଆ ଧୋ
ଯୋଡ଼ କିଆରୀରେ ଗହଳ ଧାନ
ତୁ ସେଇ କିଆରୀରେ ଶୋ ।
ସୋଲ ଶାଗ ବିଡ଼ି ବିଡ଼ି
କୁନା ଯାଉଥିବ ପାଲିଙ୍କି ଚଢ଼ିଲୋ
ଫୁଲ ପଡୁଥିବ ଝଡ଼ି । ... (*ପୁରୀ ଅଂଚଳ*)

କୋକ ବାୟା ନନାରେ
ବାଡ଼ି ପନ୍ଦାଡେ ଥା
କୁନିଆ କାନ ମୋଚି ମୋଚିକା
ଆଉ ଯାହା କାନ ଖା ।
ଠକାଳ ବାଇ ନନାରେ
ମୋ ବୋଲ ଶୁଣ୍
ବିଲର ମାଛ ଚିଲ ଖାଇଗଲା
ଦଉଡ଼ି ଖଣ୍ଡିଏ ବୁଣ୍ ।
ଦଉଡ଼ି ଖଣ୍ଡେ ବୁଣ୍‌ରେ ନନା
ଫାଶଟିଏ କର୍
ଫାଶଟିଏ କରି ସାରି
ଚିଲମାନଙ୍କୁ ଧର୍ ।... (ଡିଗିରିଆ ଅଂଚଳ)

ନିଦ ମାଉସୀ, ନିଦ ମାଉସୀ
ଚାଳେ ବାଡେ ଥା
ସେରେ ଚାଉଳ ଦେ'ନେ ବାବୁକୁ
ନିଦ କରେଇ ଯା ।
କଳ ମିନାରେ ତୁ ଯା ଯା ପଳାଇ
ବାଇଆ ମୋର ଶୋଇ ପଡ଼ିଛି
ଆଉ କାନ୍ଦିବ ନାହିଁ ।

ମେଘ ବରଷଇ ଝୁପୁରୁ ଝୁପୁରୁ
ବାରିଆଡେ ଗୋଟେ କିଏ ରେ ?
ବାରି ପଛ ଆଡେ ମହଣ ପତର
ମୁଣ୍ଡରେ ଟିକିଏ ଦେଏରେ ।
ନାନାରେ ନିଦ ମାଉସୀ
ନିଦ ଦେଇଯା ପିଢାରେ ବସି
କୁକୁ ଯିବ ମାମୁଁ ଘରକୁ
ତା' ମାମୁଁ ଆସିବ ପର ଦିନକୁ ।
x x
ନାହିଁ ଲୋ ନାହିଁ
ନାହିଁ ଲୋ ନାହିଁ
ମୋ ଘଣ୍ଟି ବନ୍ଧା ସୁନା କାହିଁ
ମୋ ବାପ ଧନ କାହିଁ
ମୋ ଧନ ପଡିଲା ଶୋଇ ।

## ଶିଶୁକୁ ଚିଆଁଇବା (ନିଦରୁ ଉଠାଇବା) ଗୀତ

ପାହିଲା ଶର୍ବରୀରେ ବଂଶୀଧାରୀ
ଉଠ ଉଠ
କାକ କୁକ୍କୁଟ କୋକିଳ
ଧ୍ୱନି କଲେ କୋଳାହଳ
ପୂର୍ବ ଦିଶେ
ଉଦେ ଗଗନ ବିହାରୀ ରେ ।।
ପାହିଲା ରଜନୀରେ ରଘୁମଣି
ଉଠ ଉଠ
କାକ କୁକ୍କୁଟ କୋକିଳ
ଧ୍ୱନି କଲେ କୋଳାହଳ
ପୂର୍ବ ଦିଗେ
ବିଜେ ଦିନ ମଣିରେ ।।

# କଥାଣୀ

ପିଲା କ୍ରମେ  ବଡ଼ ହୁଏ । ମାଆ କୋଳ ଛାଡି ଠୁକୁରୁ ଠୁକୁରୁ ଚାଲେ । କଥା ଶୁଣିବାକୁ କାନ ଡେରିଥାଏ । କଥାଣୀ କହିଲେ, ଭୋକ ଶୋଷ ଭୁଲିଯାଏ । ଖାଇ ବସିଲା ବେଳେ, ଶୋଇଲା ବେଳେ ମାଆ, ଜେଜେମାଁ ଆଦି ଘର ଲୋକଙ୍କୁ କଥାଣୀ କହିବାକୁ ଜିଦ୍ କରେ ।

ପିଲା କାନ୍ଦୁଥିଲେ, ରୁଷୁଥିଲେ ମାଁ ଅନ୍ୟମାନଙ୍କ କଥାଣୀ କହିବେ ବୋଲି କହି ଚୁପ୍ କରାନ୍ତି । ସେ ଚୁପ୍ ଚାପ ପାଖରେ ବସି କଥାଣୀ ଶୁଣି । ଶୁଣି ଶୁଣି ନିଜେ ସେ ସବୁ କହିବା ଆରମ୍ଭ କରିଦିଏ । ପ୍ରଥମେ କରେ । ତାପରେ ପୁଣି ଶୁଣି ମନେ ରଖେ ।

ଓଡିଶାର ବିଭିନ୍ନ ଅଂଚଳରେ ଭିନ୍ନ ଭିନ୍ନ କଥାଣୀ ଅଛି । ଗାଁର, ସହରର, ପଲ୍ଲୀମାଳର ସବୁ ପିଲା ଏହା ଶୁଣିଛନ୍ତି । ଗଦ୍ୟ ହେଲେ ବି' ଏଥିରେ ପଦ୍ୟର ଛନ୍ଦ ଅଛି । ତେଣୁ ଏହା ପିଲାଙ୍କ ମନକୁ ମୋହିନିଏ । କଥାଣୀରେ ପଦ ପଦୁ ଥିବାରୁ ମନେ ରହିଯାଏ ।

ସବୁ କଥାଣୀ ପ୍ରାୟ ସମାନ । ମଝିରେ ଗୋଟିଏ ଦୁଇଟା ପଦ ଏପଟ ସେପଟ ହୋଇଥାଏ । ଆରମ୍ଭ ଓ ଗପ ଶେଷର କଥାଣୀ ଦୁଇଟି ଭାରି ଲୋକ ପ୍ରିୟ । ତାହାହିଁ ଏଠାରେ ଦିଆଗଲା-

**ମୋ କଥାଟି ସରିଲା- ଫୁଲ ଗଛଟି ମରିଲା ।**
**ହଇରେ ଫୁଲ ଗଛ କାହିଁକି ମଲୁ ?**
**ମୋତେ କାଳୀ ଗାଈ ଖାଇଗଲା ।**
**ହଇରେ ଗଉଡ, କାହିଁକି ଜଗିଲୁ ନାହିଁ ?**
**ମୋତେ ବଡ଼ ବୋହୂ ଖାଇବାକୁ ଦେଲା ନାହିଁ ।**
**ହଇଲେ ବୋହୂ, କାହିଁକି ଖାଇବାକୁ ଦେଲୁ ନାହିଁ ?**
**ପୁଅ କାନ୍ଦିଲା ।**
**ହଇରେ ପୁଅ, କାହିଁକି କାନ୍ଦିଲୁ ?**
**ମୋତେ ଜନ୍ଦା କାମୁଡ଼ିଲା ।**
**ହଇରେ ଜନ୍ଦା, ତୁ କାହିଁକି କାମୁଡ଼ିଲୁ ?**
**ମୁଁ ଭୂଇଁ ତଳେ ତଳେ ଥାଏଁ**
**କଅଁଳ ମାଉଁସ ଟିକିଏ ପାଇଲେ**
**ଚୁଟ୍ କିନା ଚୋବାଇ ଦିଏଁ ।**

●